# ଯୁଗେଯୁଗେ ଯୋଗାଯୋଗ

( ୩ୟ ଭାଗ )

ଲେଖକ :

ଡକ୍ଟର ଜଗନ୍ନାଥ ମହାନ୍ତି

ପ୍ରକାଶକ :

ସାହିତ୍ୟ ପ୍ରତିଷ୍ଠାନ

ଚଣ୍ଡିଛକ, କଟକ-୮

ପ୍ରକାଶକ :

**ସାହିତ୍ୟ ପ୍ରତିଷ୍ଠାନ**

ଚଣ୍ଡି ଛକ, କଟକ-୧

ପ୍ରଥମ ପ୍ରକାଶ : ୧୯୮୮

ମୁଦ୍ରଣ :

**ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍**

ମିଶନ୍ ରୋଡ଼, କଟକ-୧

ମୂଲ୍ୟ : **ଦୁଇଟଙ୍କା ପନ୍ଦର ପଇସା ମାତ୍ର**

# ଏଥିରେ ଅଛି...............

# ଦୂର ଦୂରାନ୍ତର ଛବି ଓ ଖବର,
# ପାଖରେ ହାଜର

( ଟେଲି ପ୍ରିଣ୍ଟର ଓ ଟେଲିଫଟୋଗ୍ରାଫର )

ଆଗେ ଯେଉଁ ସବୁ ଟେଲିଗ୍ରାଫ ବାର୍ତ୍ତା ଡାକଘରକୁ ଆସୁଥିଲା, ସେଗୁଡ଼ିକୁ ଜଣେ ଜଣେ ଲୋକ (ଅପରେଟର) ସଂଗ୍ରହ କରୁଥିଲେ । ପୂର୍ବରୁ କୁହାଯାଇଛି ମୋର୍ସେକୋଡ଼ର



ସାଙ୍କେତିକ ଭାଷାରେ ସେସବୁ ଆସୁଥିଲା । ସେଇ ଭାଷା ବୁଝିବାରେ ଅପରେଟର ତାଲିମ ପାଉଥିଲେ । ସେ ସେଇ ବାର୍ତ୍ତାକୁ ବୁଝି ଖଣ୍ଡେ ଖଣ୍ଡେ କାଗଜରେ ଲେଖି ଦେଉଥିଲେ । ଡାକବାଲା ତାକୁ ବାଣ୍ଟି ଦେଉଥିଲେ ।

ତାରବାର୍ତ୍ତା ଆଗେ ବହୁତ କମ୍ ଆସୁଥିଲା । ନିତାନ୍ତ ଜରୁରୀ ନ ପଡ଼ିଲେ କେହି ତାର ବାର୍ତ୍ତା ପଠାଉ ନ ଥିଲେ । ସାଧାରଣତଃ କେହି ମରିଗଲେ ବା ମୃତ୍ୟୁ ଶଯ୍ୟାରେ ପଡ଼ିଥିଲେ ତାର ପଠାଯାଏ । ଯେଉଁ ତାର ଯିଏ ପାଆନ୍ତି, ତାଙ୍କ ଛାତିରେ ଆଗେ ଛନକା ପଶିଯାଏ । ତା ପରେ ସେ ତାର ପଢ଼ି ଯାହା ବୁଝନ୍ତି ।

ପୁଣି ମଣିଷର ତ ଭୁଲ ହେବା ସ୍ୱାଭାବିକ । କେତେ-ବେଳେ ଠାରରେ ଲେଖିବାରେ ବା ତାକୁ ବୁଝିବାରେ ଭୁଲ ହୋଇଯାଏ । ଭୁଲଖବର ପାଇବା ଲୋକର ମୁଣ୍ଡ ବିଗିଡ଼ିଯାଏ । ଭଲ ଖବର ତ ତାରରେ ଖୁବ୍ କମ୍ ପଠା-ଯାଉଥିଲା । ତାର ଖବର ମାନେ ବିପଦ ଆଉ ଦୁର୍ଘଟଣାର ସୂଚନା !

ଦିନକୁ ଦିନ ଏଇ ତାର ବାର୍ତ୍ତାର ସଂଖ୍ୟା ବଢ଼ିବାରେ ଲାଗିଲା । ଜଣେ ଲୋକ ଏଇ ସବୁ କାମ ସମ୍ଭାଳିବା ଅସମ୍ଭବ ହେଲା । ପୁଣି ହାତଲେଖା ଆହୁରି ମୁଷ୍କିଲ !

ସହରମାନଙ୍କରେ ତ ଘଣ୍ଟାକେ ଶହ ଶହ ସଂଖ୍ୟାରେ ତାର ସବୁ ପହଞ୍ଚୁଥିଲା । କେତେ ଲୋକ ବା ତାକୁ ପାରିବେ ? ସେଥିପାଇଁ ଟେଲିଗ୍ରାଫ ବାର୍ତ୍ତା ଛାପିବା ବା ଟାଇପ୍ କରିବା ଯନ୍ତ୍ର ବାହାରିଲା । ୧୯୦୦ ମସିହାରେ ହେଲା ଏଇ

ଯନ୍ତ୍ରର ଜନ୍ମ । ଆମେରିକାର ଗ୍ରୃରଜଣ ବଇଜ୍ଞାନିକ ମିଶି ଏଇ ଯନ୍ତ୍ରକୁ ବାହାର କରିଥିଲେ ।

ଏଇ ଯନ୍ତ୍ରର ନାମ ହେଲା ଟେଲିଟାଇପ୍ ରାଇଟର ବା ଟେଲିଗ୍ରାଫ ବାର୍ତ୍ତା ଛାପିବା ଯନ୍ତ୍ର । ଏଥିରେ ଦୂରରୁ ଆସୁଥିବା



ବାର୍ତ୍ତା ବିଜୁଳି ତରଙ୍ଗର ଗ୍ରୃପରେ ଟାଇପ୍ କରି କାଗଜ ଫିତାରେ ଲେଖି ହୋଇଯାଏ । ଅପରେଟର ସେଇ ଫିତାକୁ ଛିଣ୍ଡି ଗୋଟିଏ କାଗଜରେ ଲଗାଇ ଦିଅନ୍ତି । ଜଣେ ଲୋକ ନେଇ ତାକୁ ଶୀଘ୍ର ବାଣ୍ଟିଦିଅନ୍ତି ।

ଦୁନିଆର କେଉଁ କୋଣରେ ଘଟିଲା ଏକ ଘଟଣା। ଘଣ୍ଟାଏ ଦୁଇ ଘଣ୍ଟାରେ ଏହା ଖବର କାଗଜରେ ଛପାଯାଉଛି। କିପରି ଏହା ସମ୍ଭବ ହୋଇପାରୁଛି ?

ଆଜିକାଲି ଦେଶ ବିଦେଶରୁ ଖବର ସଂଗ୍ରହ କରିବାକୁ ଅନେକ ଅନୁଷ୍ଠାନ ଅଛନ୍ତି। ସେମାନେ ଖବର ସଂଗ୍ରହ କରନ୍ତି ନାନା ଉପାୟରେ। ବହୁ ଜାଗାରେ ସମ୍ବାଦ ଦାତାମାନଙ୍କୁ ନିଯୁକ୍ତ କରାଯାଇଥାଏ। କେଉଁ ଘଟଣା ବିଶେଷ ସମ୍ବାଦଦାତାଙ୍କୁ ପଠାଯାଏ।

ଚାରିଆଡ଼ୁ ଖବର ସବୁ ଚାଲିଆସେ। ସେଇ ଅନୁଷ୍ଠାନ ତରଫରୁ ଶହ ଶହ, ହଜାର ହଜାର ଖବର କାଗଜକୁ ଖବର ସବୁ ପଠାଯାଏ। ଯେତେ ଶୀଘ୍ର ଏଇ ଖବର ସେମାନଙ୍କ ପାଖରେ ପହଞ୍ଚିବ ସେତେ ଭଲ। ନଚେତ ବାସିଖବର ବାସି ଖାଦ୍ୟ ପରି କାହାର ପସନ୍ଦ ହୁଏ ନାହିଁ।

ଏଇ ଅନୁଷ୍ଠାନକୁ କୁହାଯାଏ ସମ୍ବାଦ ସରବରାହ ସଂସ୍ଥା। ଆଗେ ଟେଲିଗ୍ରାଫ୍ ସାହାଯ୍ୟରେ ଖବରମାନ ଖବର କାଗଜଗୁଡ଼ିକୁ ପଠାଯାଉଥିଲା। ହେଲେ, ଦିନକୁ ଦିନ ଖବର ସଂଖ୍ୟା ବଢ଼ିଲା ପତ୍ର-ପତ୍ରିକା ସଂଖ୍ୟା ବି ବଢ଼ିଲା। କେତେ ଟେଲିଗ୍ରାଫ୍ ବା ପଠାଯାଇ ପାରିବ ? ଏଥିପାଇଁ କେତେ ଲୋକ, କେତେ ଆସବାବପତ୍ର, କେତେ ଖର୍ଚ୍ଚ ହେବ ?

ଏହି ଅସୁବିଧାକୁ ଦୂର କରିବା ପାଇଁ ଟେଲିପ୍ରିଣ୍ଟର ବାହାରିଲା । ସମ୍ବାଦ ସରବରାହ ସଂସ୍ଥାର ପ୍ରଧାନ ଅଫିସ୍‌ରେ ଏକ ସମ୍ବାଦ ପ୍ରେରକ ଯନ୍ତ୍ର ରହିଥାଏ । ଏହା ଦେଖିବାକୁ ଏକ ବଡ଼ ଟାଇପ ମେସିନ୍ ପରି । ଜଣେ ଲୋକ ଖବରସବୁ ସେଇ ଯନ୍ତ୍ରରେ ଟାଇପ କଲାଭଳି ଟାଇପ୍ କରିଥାଏ ।

ପ୍ରାୟ ପ୍ରତ୍ୟେକ ଖବର କାଗଜ ଅଫିସରେ ଗୋଟିଏ ଲେଖାଁ ଟାଇପପ୍ରିଣ୍ଟର ଗ୍ରାହକ ଯନ୍ତ୍ର ରଖା ଯାଇଥାଏ । ସେଥିରେ ସେଇ ଖବର ସବୁ ଗୋଟିଏ ଲମ୍ବା କାଗଜରେ ଛପା ହୋଇଥାଏ । କେବଳ ଟେଲିଗ୍ରାଫରେ ଛପା ହେଲା ଭଳି ହୋଇଥାଏ । ଟକେବଳ ଟେଲିଗ୍ରାଫ କାଗଜ ଅଣ-ଓସାରିଆ ଫିତା ପରି । ଟେଲିପ୍ରିଣ୍ଟରରେ ଛପା ହେଉଥିବା କାଗଜର ଓସାର ସାଢ଼େ ୨୧ ସେଣ୍ଟିମିଟର ବା ସାଢ଼େ ୮ ଇଞ୍ଚ ।

ଏହି କାଗଜର ରୋଲର ଟେଲିପ୍ରିଣ୍ଟର ଯନ୍ତ୍ରରେ ରଖାଯାଇଥାଏ । ଆପେ ଆପେ ସେଥିରେ ଦୂରରୁ ଆସୁଥିବା ଖବରମାନ ଟାଇପ୍ ଅକ୍ଷରରେ ଲେଖି ହୋଇ ଯାଉଥାଏ । ଖବର କାଗଜ ଅଫିସରେ ସେଇ କାଗଜରୁ ମଝିରେ ମଝିରେ ଚିରି ନିଆଯାଏ । ସେଥିରୁ ସମ୍ବାଦମାନ ଖବର କାଗଜ ପାଇଁ ପ୍ରସ୍ତୁତ କରାଯାଏ । ସାଧାରଣତଃ ଟେଲି-ପ୍ରିଣ୍ଟରେ ଇଂରେଜି ଭାଷାର ବ୍ୟବହାର ହୋଇଥାଏ ।

ଆଜିକାଲି ଟେଲି ପ୍ରିଣ୍ଟରରେ ଖବର ଆସିଲା ପରି ଚିତ୍ରମାନ ମଧ୍ୟ ଦୂର ସ୍ଥାନରୁ ଆସି ଛପା ହୋଇଯାଉଛି ।

ଏହା ମଧ୍ୟ ବକୁଳ ତାର ସାହାଯ୍ୟରେ ହେଉଛି ଜାଣିଲେ ତୁମେ ନିଶ୍ଚୟ ଅବାକ୍ ହେବ। ହେଲେ, ଏହା ଖାଲି ସମ୍ଭବ ହେଉନାହିଁ । ସେଇ ଛବି ଗୁଡ଼ିକ ଖୁବ୍ ସ୍ପଷ୍ଟ ଓ ସୁନ୍ଦର ଦିଶୁଛି ।

ଏଥିପାଇଁ କେତେ ଛୋଟ ବଡ଼ ଧରଣର ଯନ୍ତ୍ର ଦରକାର ହୁଏ । ଖବର କାଗଜ ସଂସ୍ଥା ମାନଙ୍କରେ ଏହି ଯନ୍ତ୍ରର ଆଦର ଖୁବ୍ ବଢ଼ି ଯାଉଛି । ଦୂର ଦୂରାନ୍ତରୁ ଖବର ସହିତ ଫଟୋମାନ ଆସି ପାରୁଛି । ପୋଲିସ ବିଭାଗ ମଧ୍ୟ ଚୋର ଡକାୟତଙ୍କ ଫଟୋକୁ ହଠାତ୍ ଅନ୍ୟ ଥାନାଗୁଡ଼ିକୁ ପଠାଇଥାନ୍ତି । ଶିଳ୍ପ ବ୍ୟବସାୟୀମାନେ ମଧ୍ୟ ସେମାନଙ୍କ ଉତ୍ପନ୍ନ ପଦାର୍ଥର କାଟତି ପାଇଁ ଏହି ପଦ୍ଧତିରେ ଫଟୋମାନ ଖବର କାଗଜରେ ଛାପିବାକୁ ଦେଇଥାନ୍ତି ।

ଏହି ଯନ୍ତ୍ରରେ ଥାଏ ଗୋଟିଏ ପ୍ରେରକ ଅଂଶ ଆଉ ଅନ୍ୟଟି ଗ୍ରାହକ ଅଂଶ । ଗୋଟିଏ ଚିତ୍ର ଉପରେ ଆଲୁଅ ପକା ହୋଇଥାଏ । ସେଇ ଆଲୁଅ ପ୍ରତିଫଳିତ ଆଲୁଅ କଣା ରୂପରେ ପରିଣତ ହୁଏ । ତାହା ପ୍ରେରକ ଯନ୍ତ୍ରରୁ ଯାଇ ଗ୍ରାହକ ଯନ୍ତ୍ରରେ ଧରାଯାଏ । ଏକ ପ୍ରକାର କାଗଜରେ ଏହା ଚିତ୍ର ବା ଫଟୋ ଆକାରରେ ଛପା ହୋଇଯାଏ ।

ଏହିପରି ଦୂରରୁ ଆସୁଥିବା ଖବର ଓ ଫଟୋସବୁ ଆଖି ପିଛୁଳାକେ ଛପା ହୋଇଥାଏ । ଆଜିର ବିଜ୍ଞାନ ଏହି-ପରି ଅସମ୍ଭବ କାମକୁ ସମ୍ଭବ କରିଛି ।



# ଟେଲିଫୋନର ନାନା ରୂପ, ନାନା କାମ

ଟେଲିଫୋନର ମଜା ଏବେ ଖାଲି ପିଲାମାନଙ୍କ ପଢ଼ାବହିରେ ନାହିଁ । ଦେଶଦେଶ, ସହର ସହର ଏମିତିକି ଆଜିକାଲି ଗାଁ ଗଣ୍ଡାରେ ମଧ୍ୟ ଟେଲିଫୋନର ମାୟା । ଟେଲିଫୋନ ଆଉ ଏକ ବିଳାସ ବା ଆଡ଼ମ୍ବର ହୋଇ ରହିନାହିଁ । ଏହା ଏକ ଆବଶ୍ୟକତାରେ ପରିଣତ ହୋଇଛି ।

.
.

ଟେଲିଫୋନକୁ ଛାଡ଼ି ଆଜିର ଦୁନିଆ ଅଚଳ । ବାଣିଜ୍ୟ, ବ୍ୟବସାୟ, ଶିଳ୍ପ, ଶିକ୍ଷା, ଚିକିତ୍ସା, ରାଜନୀତି ଆଦି ସବୁ କିଛି ତା ଛଡ଼ା ଆଜି ଅସମ୍ଭବ ଲାଗୁଛି । ଜରୁରୀ କଥା ହେବା, ସୁଖଦୁଃଖ ହେବା, ଭଲ ମନ୍ଦ ବୁଝିବା ଆଦି ସବୁ କାମରେ ଟେଲିଫୋନ ଲୋଡ଼ା । ଟେଲିଫୋନ ବିନା ଆଜିର ସଂସାର ବି ନାରଖାର !

ଶହେ ବର୍ଷ ପୂର୍ବରୁ ଟେଲିଫୋନ ଥିଲା ଏକ ସ୍ୱପ୍ନର ବିଷୟ । ବିଲାତର ଗ୍ରାହାମ୍ ବେଲ ଆମେରିକାରେ ଥିଲା-

ବେଳେ ଏହି ଯନ୍ତ୍ରଟିକୁ ବାହାର କରିଥିଲେ । ସେ ଭାରି ଗୀତପ୍ରିୟ ଥିଲେ । ଗୀତ ଗାଇବାକୁ ଆଉ ଶୁଣିବାକୁ ତାଙ୍କର ଥିଲା ଭାରି ଝୁଙ୍କ୍ ।

ଯେତେବେଳେ ଟେଲିଗ୍ରାଫ ଯନ୍ତ୍ର ବାହାରି ଅଲଂ କେତୋଟି ଜାଗାରେ କାମ କରୁଥାଏ । ଗ୍ରାହାମବେଲ ଭାବୁଥିଲେ ବାଜାସ୍ୱରକୁ ଅନୁକରଣ କରି ହେବ । ସେମିତି ମଣିଷର ସ୍ୱରକୁ ଅନୁକରଣ କରି ହୁଅନ୍ତା କି ?



ଏଥିପାଇଁ ସେ ଦିନରାତି ଚିନ୍ତା କଲେ । ଗବେଷଣା କଲେ । ଏଥିରେ ବହୁ ଖର୍ଚ୍ଚ ବି ହେଲା । ବିଜୁଳି ବଳରେ ସେ

ମଣିଷର ଶବ୍ଦ ପଠାଇବାରେ ସଫଳ ହେଲେ । ୧୮୭୫ ମସିହାରେ ସେ ଏକ ମାଇକ୍ରୋଫୋନ ତିଆରି କଲେ । ଗୀତର ଟେଲିଗ୍ରାଫ କରି ଦୂରକୁ ପଠାଇବାରେ ସେ କୃତ-କାର୍ଯ୍ୟ ହେଲେ ।

ଓ୍ୱାଟସନ ନାମକ ଜଣେ ବୈଜ୍ଞାନିକ ବେଲ୍‌ଙ୍କୁ ଟେଲିଫୋନ୍ ବାହାର କରିବାରେ ସାହାଯ୍ୟ କଲେ । ଦିନେ ଗୋଟିଏ ଦୋମହଲା ଘରେ ଦୁହେଁ ଗବେଷଣା କରୁଛନ୍ତି । ଜରୁରୀ ଦରକାର ପଡ଼ିବାରୁ ବେଲ୍ ଡାକ ଛାଡ଼ିଲେ । ଓ୍ୱାଟସନ୍ ଦୟାକରି ଏଠାକୁ ଆସ । ମୁଁ ତୁମକୁ ଚାହୁଁଛି ।

ସେତେବେଳକୁ ଓ୍ୱାଟସନ୍ ଆଉ ଗୋଟିଏ କୋଠରୀ-ରେ ରହି ଟେଲିଫୋନ ତାରକୁ ନେଇ ପରୀକ୍ଷା କରୁଥିଲେ । ହଠାତ୍ ତାଙ୍କ କାନରେ ବାଜି ଉଠିଲା ଗ୍ରାହାମ୍‌ଙ୍କ ଏଇ କେଇ ପଦ କଥା । ସେ ଚମକି ପଡ଼ିଲେ ।

ଟେଲିଫୋନ ଯନ୍ତ୍ରଟି କାମ କରିବା ଜାଣି ପାରିଲେ । ଆନନ୍ଦରେ ସେ ଉତ୍‌ଫୁଲ ହୋଇ ଉଠିଲେ । ସେ ବେଲ୍‌ଙ୍କ ପାଖକୁ ଧାଇଁଗଲେ । ଆଉ ଥରେ ପରୀକ୍ଷା କରି ଜାଣିଲେ ସତରେ ସତରେ ଟେଲିଫୋନ ଯନ୍ତ୍ରଟିରେ ଦୂରକଥା ପାଖରେ ସ୍ପଷ୍ଟ ଶୁଣାଯାଉଛି । ସେମାନଙ୍କ ବହୁ ଦିନର ସ୍ୱପ୍ନ ସାର୍ଥକ ହେଲା ।

କିଛି ଦିନ ପରେ ଏକ ବଡ଼ ପ୍ରଦର୍ଶନୀ ହେଲା । ସେଠାରେ ଗୋଟିଏ ଜାଗାନେଇ ବେଲ ଓ ଓ୍ୱାଟସନ୍ ତାଙ୍କ ଟେଲିଫୋନ୍ ଯନ୍ତ୍ରର କରାମତି ଦେଖାଇଲେ । ଏଥିରେ କିନ୍ତୁ ଲୋକେ ସେମିତି ଆଗ୍ରହୀ ହେଲେ ନାହିଁ । ପିଲାଟିଏ ଦିଆସିଲି ଖୋଳରେ ସୂତା ବାନ୍ଧି କଥା ହେଲା ଭଳି ଲାଗିଲା ।

ପ୍ରଦର୍ଶନୀର ଦ୍ୱିତୀୟ ଦିନ । ବ୍ରାଜିଲର ରାଜା ଆସିଲେ । ବୁଲି ବୁଲି ଶେଷରେ ବେଲଙ୍କ ଟେଲିଫୋନ ଯନ୍ତ୍ର ପାଖରେ ପହଞ୍ଚିଲେ । ଟେଲିଫୋନ ଯନ୍ତ୍ରଟି ସେ କାନରେ ଦେଲେ । କିଛି ଦୂରରେ ରହି ବେଲ୍ ସେକ୍ସ୍‌-ପିୟରଙ୍କ ଏକ ନାଟକରୁ ଅଂଶଟିଏ ପଢ଼ି ଶୁଣାଇ ଦେଲେ । ରାଜା ହଠାତ୍ ଖୁସି ହୋଇଗଲେ । ସେ ପାଟି କରି ଉଠିଲେ ଆରେ ଏ ଯନ୍ତ୍ରଟାତ କ'ଣ କଥା କହୁଛି !

ରାଜାଙ୍କ ଏଇ କଥା ଅନ୍ୟମାନଙ୍କ କାନରେ ପଡ଼ିଲା । ଚଉଦିଗରେ ଏଇ ଘଟଣା ପ୍ରଘଟ ହୋଇଗଲା । ୧୮୯୮ରେ ପ୍ରଥମ ଟେଲିଫୋନ୍ ଇଂଲଣ୍ଡରେ କାମରେ ଲାଗିଲା । ଡାକ ବିଭାଗ ଟେଲିଫୋନ୍ ବସାଇବାର ଦାୟିତ୍ୱ ନେଲେ । ତାର ଉନ୍ନତି ଦିଗରେ ନାନା ଗବେଷଣା ଚାଲୁ ରହିଲା । ପ୍ରଥମେ ଦୁଇଟି ତାରରେ ଦୁହେଁ କଥା ହେଉଥିଲେ । ପରେ ଗୋଟିଏ ତାରରେ ଦୁଇଜଣ କଥା ହୋଇ ପାରିଲେ ।

ଏବେ ଟେଲିଫୋନ୍ ଆପେ ଆପେ କାର୍ଯ୍ୟ କରୁଛି । ତାକୁ ଚଲାଇବା ପାଇଁ ମଣିଷ ଦରକାର ପଡ଼ୁନାହାନ୍ତି । ବିଭିନ୍ନ ସହରରେ ସ୍ୱୟଂକ୍ରିୟା ଟେଲିଫୋନ୍ ଏକ୍ସଚେଞ୍ଜ କାମ କରୁଛି ।





ଟେଲିଫୋନ୍ ସାହାଯ୍ୟରେ ଗୋଟିଏ ସହରର ଲୋକ ଅନ୍ୟ ସହରର ଲୋକଙ୍କ ସହିତ କଥା ହୋଇ ପାରୁଛନ୍ତି । ତାର ସାହାଯ୍ୟରେ ଏହି ଯୋଗାଯୋଗ ସମ୍ଭବ

ହୋଇ ପାରିଲା । ଏହାକୁ ଟେଲିଫୋନ୍ କୁହାଯାଏ । ଦୂର ଦୂରାନ୍ତରକୁ ଶବ୍ଦ ପଠାଇବା ପାଇଁ ବିଜୁଳି ଶକ୍ତି ସାହାଯ୍ୟରେ ସରଳ କରିବାକୁ ପଡ଼େ ।

ଏବେ ଦେଶ ବିଦେଶ ମଧ୍ୟରେ ଫୋନରେ କଥା-ବାର୍ତ୍ତା ହୋଇପାରୁଛି । ଜଣେ ଭୁବନେଶ୍ୱରରେ ଥାଇ ଲଣ୍ଡନରେ ଥିବା ଜଣେ ବନ୍ଧୁଙ୍କ ସହିତ କଥା ହୋଇ ପାରୁଛନ୍ତି । ସମୁଦ୍ର ଭିତରେ ଟେଲିଫୋନ୍ ତାର ବିଛା ଯାଇ ଏହା ସମ୍ଭବ ହୋଇ ପାରିଛି । କଥାକୁ ସରଳ କରିବା ପାଇଁ ବିଜୁଳି ଯନ୍ତ୍ରପାତିର ସାହାଯ୍ୟ ନିଆଯାଉଛି ।

ଟେଲିଫୋନର ଏକ ଉନ୍ନତି ହେଲା ପିକ୍‌ଚର ଫୋନ ବା ଭିଡ଼ିଓ ଫୋନ୍ । ଯେଉଁ ଲୋକ ସାଥିରେ ଫୋନରେ କଥା ହେଉଥିବେ, ସେଇ ଲୋକର ମୁହଁ, ତାର ହସ କାନ୍ଦ ସବୁ ସେଇ ଯନ୍ତ୍ରରେ ଦେଖାଯିବ । ଆମେରିକାରେ ୧୯୭୦ ମସିହାରେ ପ୍ରଥମେ ଏହାର ଜନ୍ମ ହେଲା । ଏବେ କଳା ଧଳା ଟେଲିଭିଜନ ଚିତ୍ର ପରି ଦେଖାଯାଉଛି । ଆଗକୁ ସେମିତି ରଙ୍ଗୀନ ଚିତ୍ର ଦେଖାଯିବାର ଆଶା ଅଛି ।

ସେହିପରି ରେଡ଼ିଓ ଟେଲିଫୋନ ଆଉ ଏକ ଆଶ୍ଚର୍ଯ୍ୟ । ବିନା ତାରରେ ରେଡ଼ିଓ ଖବର ବା ନାଟକ

ଶୁଣିଲା ପରି ରେଡ଼ିଓ ଫୋନ୍‌ରେ ସୁଇଚ ଟିପି ଦେଇ ଦୂରରେ ଥିବା ଲୋକ ସାଥିରେ କଥା ହୋଇ ପାରୁଛୁ । ଏହା ଟ୍ରାଞ୍ଜିଷ୍ଟର ରେଡ଼ିଓ ପରି କାମ କରେ ।



ଏବେ ପକେଟ ରେଡ଼ିଓ ପରି ପକେଟ ଫୋନ ବାହାରିଲାଣି । ଯେଉଁଠି,ଗୃହିଁବ ସେଠି ବୋତାମ ଟିପି ଅନ୍ୟ ମାନଙ୍କ ସହିତ କଥା ହୋଇ ପାରିବ । ପୋଲିସ ବିଭାଗରେ ଆଜିକାଲି ସେମିତି ଫୋନ୍ ବହୁ ସଂଖ୍ୟାରେ ବ୍ୟବହାର କରାଯାଉଛି ।

ଆଉ ଗୋଟିଏ ଅଦ୍ଭୁତ କଥା ହେଲା ଡିକ୍‌ଟୋଫୋନ୍ । ଘରେ ନଥିଲାବେଳେ ଫୋନ୍ ଆସିଲା । ଜରୁରୀ ଖବର ପାଇବାର ଅଛି । ଟେଲିଫୋନ୍ ଯନ୍ତ୍ର ସହିତ ଡିକ୍‌ଟୋଫୋନ ଯନ୍ତ୍ରକୁ ଯୋଡ଼ିଦେଲେ ହେଲା । ତୁମେ ଜରୁରୀ କାମରେ କୁଆଡ଼େ ଚାଲିଗଲେ ସୁଦ୍ଧା ଫୋନ ଆସିଲେ ଡିକ୍‌ଟୋଫୋନ ଯନ୍ତ୍ରରୁ ଶୁଣାଯିବ, ବାବୁ ନାହାନ୍ତି ଆପଣ କ'ଣ କହିବାକୁ ଚାହୁଁଛନ୍ତି କହନ୍ତୁ । ମୁଁ ଲେଖି ନେଉଛି ।

ଫୋନରେ ଯାହା କହିଲେ ସେ ସବୁ କଥା ଡିକ୍‌ଟୋଫୋନ୍‌ରେ ଟେପ୍‌ରେକର୍ଡିଂ ହୋଇଗଲା । ବାବୁ ଘରକୁ ଆସି ସେଇ ଖବର ଶୁଣିଗଲେ । ତାଙ୍କ ଜରୁରୀ ଖବର ଘରକୁ ଆସି ପାଇଗଲେ କି ମଜା ସତେ !



# ବେତାର ଯନ୍ତ୍ର କି କାଉଁରି କାଠି !

ରେଡ଼ିଓ ଆଜି ଘରେ ଘରେ ପରିଣତ । ଧନୀ ଗରିବ ସବୁରି ପାଖରେ ଆପଣାର । ଆଜି ସେ ସବୁରି ଆଦରର । ପାନ ଦୋକାନୀ ମଧ୍ୟ ରେଡ଼ିଓ ଲଗାଇ ଦେଇଛି । ଜଳଖିଆ ଦୋକାନରୁ ରେଡ଼ିଓ ସଙ୍ଗୀତ ଭାସି ଆସୁଛି । କୃଷୀ ବି ହଳ କଲାବେଳେ । କାନ୍ଧରେ ଟ୍ରାଞ୍ଜିଷ୍ଟର ଝୁଲାଇ ଦେଉଛି ।

ଆଜିକାଲି ରେଡ଼ିଓ ଶିକ୍ଷା ପାଇଁ ଯେତିକି ଦରକାର, ମନ ଖୁସି କରିବା ପାଇଁ ସେତିକି ଦରକାର । ଦେଶ ବିଦେଶର ଖବର ଅନ୍ତର ଜାଣିବା ପାଇଁ ଏହା ଏକ ସୁଲଭ ମାଧ୍ୟମ ।

କିନ୍ତୁ ଏବେ ମନରେ ପ୍ରଶ୍ନ ଉଠେ, ରେଡ଼ିଓ ବିନା ତାରରେ ଏତେ ଦୂରରୁ ଅବିକଳ କଥା, ଗୀତ, ନାଟକ, ଖବର ଆଦି ଶୁଣାଯାଏ । ଆମେ କଥା କହିଲେ ଛ ଆଠ ଦଶ ମିଟରରୁ ଅଧିକ ଦୂରକୁ ଶୁଣାଯାଏ ନାହିଁ । ରେଡ଼ିଓ କିପରି ଶହ ଶହ କିଲୋମିଟର ଦୂରରୁ ଅବିକଳ କଥା ଆଉ ଗୀତ ଶୁଣାଏ ।

ତୁମେ ଦେଖିଥିବ ପୋଖରୀ ମଝିକୁ ଗୋଟିଏ ଇଟା ବା ପଥର ଫିଙ୍ଗିଦେଲେ ଲହରୀ ଉଠେ । ସେଇ ଲହରୀ ଆସ୍ତେ ଆସ୍ତେ କୂଳକୁ ମାଡ଼ିଆସେ । ଛୋଟ ଟେକାଟିଏ ପକାଇ ଦେଲେ ଛୋଟ ଲହରୀ ଉଠି ଅଳ୍ପ ଦୂରକୁ ଯାଇ ମିଳାଇ ଯାଏ ।

ସେମିତି ଆମେ କଥା କହିଲେ ବାୟୁମଣ୍ଡଳରେ ଏକ କମ୍ପନ ସୃଷ୍ଟି ହୁଏ । ଏହା ପୋଖରୀର ଲହରୀ ପରି ଚଉ-ଦିଗକୁ ଖେଳିଯାଏ । ଜୋର ଶବ୍ଦ ହେଲେ ବେଶୀ ଦୂରକୁ ଯାଏ । ନଚେତ୍ ଅଳ୍ପ ଦୂରକୁ ଯାଇ ତାହା ଆଉ ଶୁଣାଯାଏ ନାହିଁ ।

ମଣିଷ ତାର ଶବ୍ଦକୁ ବେଶୀ ଦୂରକୁ ପଠାଇବା ପାଇଁ ଚାହେଁ । ସେମିତି ବହୁ ଦୂର ଶବ୍ଦକୁ ପାଖରେ ଶୁଣିବାକୁ ମନ କରେ । କିନ୍ତୁ ତା ଉପରେ କୁହାଯାଇଥିବା କାରଣରୁ ବେଶୀ ଦୂରକୁ ଯାଇପାରେ ନାହିଁ ।

ମଣିଷ ଟେଲିଫୋନ ଓ ଟେଲିଗ୍ରାଫ ବାହାର କଲା । ଶହ ଶହ ମାଇଲ ଦୂରରୁ କଥା ଶୁଣି ପାରିଲା । ସେତିକି ଦୂରକୁ ମଧ୍ୟ ତାର କଥା ପଠାଇ ଦେଇ ପାରିଲା । କିନ୍ତୁ ଏଥିରେ ପ୍ରଧାନ ଅସୁବିଧା ଦୂର ହେଲା ନାହିଁ । ଗୀତ, କଥା ଆଦି ଦୂରରୁ ଶୁଣିବା ସମ୍ଭବ ହେଲା ନାହିଁ ।

ଏହା ସମ୍ଭବ ହେଲା ବେତାର ଯନ୍ତ୍ର ବାହାରିବା ଯୋଗୁଁ, ଏଇ ଯନ୍ତ୍ର ବଳରେ ଦୁନିଆର ଯେ କୌଣସି ସ୍ଥାନକୁ ଯୋଗାଯୋଗ କ୍ଷେତ୍ରରେ ଏକ ବିପ୍ଳବ ସୃଷ୍ଟି କଲା ।

ଶବ୍ଦର ଲହରୀ ସେକେଣ୍ଡକୁ ୩୩୦ ମିଟର ଯାଏ । କିନ୍ତୁ ବିଜୁଳି ଚୁମ୍ବକର ଲହରୀ ସେକେଣ୍ଡକୁ ୩ ଲକ୍ଷ କିଲୋମିଟର (୧୮୬ ହଜାର ମାଇଲ) ଗତି କରେ । ବାୟୁଶୂନ୍ୟ ସ୍ଥାନରେ ଶବ୍ଦ ଲହରୀ ଗତି କରିପାରେ ନାହିଁ । ମାତ୍ର ବିଜୁଳି ଚୁମ୍ବକ ଲହରୀ ସହଜରେ ଗତି କରିଥାଏ । ଏହି ଲହରୀରେ ଶବ୍ଦକୁ ଦୂର ସ୍ଥାନକୁ ପଠାଇ ହୁଏ ।



ମଣିଷ ଏଇ ବିଜୁଳି ଚୁମ୍ବକ ଲହରୀ ସୃଷ୍ଟି କରି ପାରିଲା । ୧୮୯୧ ମସିହାରେ ଏହା ସମ୍ଭବ ହେଲା । ଇଟାଲୀର ବିଜ୍ଞାନୀ ମାର୍‌କୋନି ବିଲାତରେ ଏହି ସଫଳତା ପାଇଥିଲେ । ଏହି ଲହରୀ ସାହାଯ୍ୟରେ ବାର୍ତ୍ତା ପଠାଇବା

ସମ୍ଭବ ହେଲା । ପ୍ରଥମେ ଇଂଲଣ୍ଡ ଓ ଫ୍ରାନସ୍ ମଧ୍ୟରେ ଏହି ସୁବିଧା ମିଳିଥିଲା ।

ତାପରେ ମାର୍କୋନୀ ୧୯୦୧ ମସିହାରେ ଇଂଲଣ୍ଡରୁ ଆମେରିକାକୁ ବେତାର ଖବର ପଠାଇ ପାରିଥିଲେ । ସେ ଏଥିପାଇଁ ଦୁଇଟି ବେତାର କେନ୍ଦ୍ର ବସାଇଥିଲେ । ୧୯୦୩ ମସିହାରେ ଆମେରିକାର ରାଷ୍ଟ୍ରପତି ବାଲ୍ଡର ମହାରାଜାଙ୍କ ପାଖକୁ ଏକ ବେତାରବାର୍ତ୍ତା ମର୍ସ କୋଡ଼ ( ଟେଲେଟକ୍ସ ) ଅନୁସାରେ ପଠାଇ ଥିଲେ ।

ବେତାର ଟେଲିଫୋନ ବା ବେତାର ଯନ୍ତ୍ରର ଜନ୍ମ ପାଇଁ ଜୋରସୋରରେ ଗବେଷଣା ଚାଲିଲା । ୧୯୧୪ ମସିହାରୁ ୧୯୨୪ ମସିହାରେ ଆମେରିକା ଠାରୁ ପ୍ରେରିତ ଯନ୍ତ୍ର ସଙ୍ଗୀତ ଇଂଲଣ୍ଡରେ ଶୁଣାଯାଇଥିଲା । ସେଠାରୁ ପୁଣି ଭାରତର କଲିକତାକୁ ପଠାଯାଇ ପାରିଥିଲା । ତାପରେ ଗୀତ, କଥା ଆଦି ଦୂରଦୂରାନ୍ତକୁ ପଠାଯାଇ ପାରିଲା ।

ବେତାର କେନ୍ଦ୍ରମାନଙ୍କରେ ପ୍ରେରକ ଯନ୍ତ୍ରମାନ ଥାଏ । ତାହା ଦ୍ୱାରା ଚୁମ୍ବକର ଲହରୀ ସୃଷ୍ଟି କରାଯାଇଥାଏ । ସେଥିରେ ନାନା ସ୍ଥାନକୁ ଗୀତ, କଥା, ନାଟକ ଆଦି ପଠା-ଯାଇଥାଏ । ଆମ ରେଡ଼ିଓ ସେଟ୍‌ମାନ ଏକ ଏକ ଗ୍ରାହକ ଯନ୍ତ୍ର । ସେଗୁଡ଼ିକରେ ରେଡ଼ିଓ କାର୍ଯ୍ୟକ୍ରମକୁ ଧରାଯାଏ ଆଉ ଆମେ ତାକୁ ଶୁଣିଥାଉ ।

ଅବଶ୍ୟ ସବୁ ବେତାର କେନ୍ଦ୍ରରୁ ସମାନ ଶକ୍ତିର ବିଜୁଳି ଚୁମ୍ବକର ଲହରୀ ସୃଷ୍ଟି କରନ୍ତି ନାହିଁ । ଶକ୍ତିଶାଳୀ ଲହରୀ ବହୁଦୂରକୁ କଥାଗୀତ ଆଦି ପଠାଇବା ପାଇଁ ଦରକାର । ଶକ୍ତିଶାଳୀ ତରଙ୍ଗ ସୃଷ୍ଟି କରିବା ପାଇଁ ଉଚ୍ଚ କ୍ଷମତା ସମ୍ପନ୍ନ ପ୍ରେରକ ଯନ୍ତ୍ର ଆବଶ୍ୟକ । ଏହା ଅଧିକ ଖର୍ଚ୍ଚ ବହୁଳ । ଦିନକୁ ଦିନ ବେତାର କେନ୍ଦ୍ର ଗୁଡ଼ିକ ଅଧିକରୁ ଅଧିକ ଶକ୍ତିଶାଳୀ କରାଯାଉଛି ।

ଆଜିକାଲିର ସବୁଠାରେ ଟ୍ରାଂଜିଷ୍ଟର ବ୍ୟବହାର । ଆଗେ ରେଡ଼ିଓରେ ଭାକ୍ୟୁମ ଟିଉବ୍ ବ୍ୟବହାର କରାଯାଉଥିଲା । ଏହା ଅଧିକ ବିଜୁଳି ଶକ୍ତି ଦରକାର କରୁଥିଲା । ସେଥିପାଇଁ ବିଜୁଳି ଶକ୍ତି ବା ବଡ଼ ବଡ଼ ବେଟେରୀ ଲାଗୁଥିଲା । ଭଲ ଶୁଣିବା ପାଇଁ ଏରିଏଲ ମଧ୍ୟ ଲୋଡ଼ା ହେଉଥିଲା । ତେଣୁ ରେଡ଼ିଓର ଆକାର ବଡ଼ ହେଉଥିଲା । ଆଉ ନେବା ଆଣିବାରେ ଅସୁବିଧା ହେଉଥିଲା ।

କିନ୍ତୁ ଟ୍ରାଂଜିଷ୍ଟର ବାହାରିବାରୁ ଛୋଟ ଛୋଟ ପକେଟ ରେଡ଼ିଓ ତିଆରି ହୋଇ ପାରୁଛି । ବିଜୁଳି ଲାଇନ ବା ଏରିଅଲର ଆବଶ୍ୟକତା ନାହିଁ । ଗୋଟିଏ ଗୋଟିଏ ମଟର ଦାନା ପରି ଟ୍ରାଂଜିଷ୍ଟର ଲଗାଇ ରେଡ଼ିଓ ସେଟ୍ ତିଆରି ହେଲେ ଆମର ଦିଆସିଲି ବାକ୍ସ କିମ୍ବା ପାନଡବା ଆକାରର ହୋଇ ପାରିବ । ତେଣୁ ତାକୁ ନେଇ ଯେ କୌଣସି ଜାଗାରେ ବ୍ୟବହାର କରି ହେବ ।

ଏହି ଟ୍ରାଂଜିଷ୍ଟର ଯୋଗୁଁ ପକେଟ ଟେଲିଭିଜନ, ଛୋଟ ଟେପ୍‌ରେକର୍ଡର, ଛୋଟ କାଲକୁଲେଟିଂ ମେସିନ କାଲି ମାନଙ୍କ ଗଣିବା ପାଇଁ ସହାୟକ ଯନ୍ତ୍ର ଆଦି ତିଆରି ହୋଇ ପାରୁଛି । ସେଗୁଡ଼ିକ ଆମ ଜୀବନକୁ ଖୁବ୍ ସହଜ ଓ ସୁଖମୟ କରି ପାରୁଛି ।

୧୯୪୮ ମସିହାରେ ତିନିଜଣ ବୈଜ୍ଞାନିକ ଶକ୍‌ଲେ, ବ୍ରାଟେନ ଓ ବାର୍ଡ଼ିନ ଟ୍ରାଂଜିଷ୍ଟର ବାହାର କରିଥିଲେ । ଏହା ଫଳରେ ସାରା ଦୁନିଆରେ ଚହଲ ପଡ଼ି ଯାଇଥିଲା । ସେମାନେ ଏଥିପାଇଁ ଦେଶ ବିଦେଶରେ ଖୁବ୍ ପ୍ରଶଂସା ପାଇଥିଲେ । ପୃଥିବୀର ଶ୍ରେଷ୍ଠ ସମ୍ମାନ ନୋବେଲ ପୁରସ୍କାର ୧୯୫୬ ମସିହାରେ ଏମାନଙ୍କୁ ମିଳିଥିଲା ।

ମହାକାଶ ଯାତ୍ରା, ଚନ୍ଦ୍ର ଭ୍ରମଣ ଆଉ କୃତ୍ରିମ ଉପଗ୍ରହ କାର୍ଯ୍ୟ ପାଇଁ ଟ୍ରାଂଜିଷ୍ଟର ଖୁବ ସହାୟକ । ଏହା ସାହାଯ୍ୟରେ ଆମେ ବହୁତ ନୂଆ କଥା ଜାଣି ପାରୁଛୁ । ମହାକାଶ ଯାତ୍ରୀମାନେ ହଜାର ହଜାର କିଲୋମିଟର ଉପରେ ଥାଇ ପୃଥିବୀର ବୈଜ୍ଞାନିମାନଙ୍କ ସହିତ କଥା ହୋଇ ପାରୁଛନ୍ତି । ସେଠାରୁ ଫଟୋ ପଠାଇ ପାରୁଛନ୍ତି । ଟ୍ରାଂଜିଷ୍ଟର ବାହାର ନଥିଲେ, ମହାଶୂନ୍ୟ ଓ ଚନ୍ଦ୍ର ମଣ୍ଡଳକୁ ମଣିଷର ଯାତ୍ରା ଏତେ ସଫଳ ହୋଇ ପାରି ନଥାନ୍ତା ।

ଅଜିକାଲି ସୂର୍ଯ୍ୟ କିରଣରୁ ବିଜୁଳି ଶକ୍ତି ସଂଗ୍ରହ କରାଯାଉଛି । ସେହି ବିଜୁଳି ଶକ୍ତି ଟ୍ରାଂଜିଷ୍ଟର ରେଡ଼ିଓକୁ

ଚଳାଇବାରେ ସାହାଯ୍ୟ କରୁଛି । ତେଣୁ ଆଜିକାଲି ସୌର ଚାଳିତ ରେଡ଼ିଓ, ଟେଲିଫୋନ ଆଦି ଖୁବ୍ ଲୋକପ୍ରିୟ ହୋଇଛି । ଭବିଷ୍ୟତରେ ଯୋଗାଯୋଗ କ୍ଷେତ୍ରରେ ସୂର୍ଯ୍ୟ କିରଣର ବ୍ୟବହାର ବଢ଼ିଯିବ ବୋଲି ଆଶା କରାଯାଉଛି ।







# ଦୂରଦର୍ଶନର ଭେଲକି

ସାରା ଦୁନିଆରେ ଆଜି ଟେଲିଭିଜନର ଭେଲକି । ଆମେ ଆଜି ସମସ୍ତେ ସେଥିରେ ବାଇ । ତାର ଚମକରେ ଆମେ ଚକିତ । ରୂପ ସାଥିରେ ଧ୍ୱନି, ଚେହେରା ସାଥିରେ କଥା । ମଣିମାଣିକର ସଂଯୋଗ !



ଗୀତ ସାଥିରେ ନାନା ପ୍ରକାର ଦୃଶ୍ୟରେ ଆମେ ମୁଗ୍‌ଧ ହେଉ । ସେଥିରୁ ତା ପାଖରେ ବସିଲେ ଆମେ

ହେଉକ ଶୋଷ ଭୁଲିଯାଉଁ । ସେଥିରୁ ଆମେ ଶିକ୍ଷା ପାଉଁ, ଆନନ୍ଦ ପାଉଁ । ଯୋଗାଯୋଗର ଏହା ଏକ ଅଦ୍‌ଭୁତ ମାଧ୍ୟମ ।

ଏହାର ମୂଳରେ ରହିଛି ଆଲୁଅର ଖେଳ । ଚଉଦିଗରୁ ଆଲୁଅ ଆସେ । ସୂର୍ଯ୍ୟ, ଚନ୍ଦ୍ର, ତାରା ଆଦିରୁ ଆଲୁଅ ଆସେ । ରାସ୍ତା କଡ଼ର ବିଜୁଳି ବତୀ, ଗାଡ଼ିର ଆଲୁଅ, ଟର୍ଚ୍ଚ, ଦିଆସିଲି ଆଦିରୁ ବି ଆଲୁଅ ବାହାରେ । ଆଲୁଅ ଯୋଗୁଁ ଅନ୍ୟ ସବୁ ଦେଖୁ ।

ଆମେ ବହିଟେ ପଢ଼ୁଛୁଁ । ତା ଉପରେ ହାତଟେ ରଖିଦେଲେ ପଢ଼ିପାରୁ ନାହୁଁ । ଆମେ କାନ୍ଥରେ ମରାଯାଇଥିବା ଗୋଟିଏ ଚିତ୍ର ଦେଖୁଁ । ତା ଆଗରେ ଠିଆ ହୋଇ ଗଲେ ତାକୁ ଦେଖିପାରୁ ନାହୁଁ । କାରଣ ଆଲୁଅ ଆମ ହାତ ବା ସେଇ ଲୋକ ପାଖରେ ଅଟକି ଯାଏ । ସେ ସବୁ ମଧ୍ୟରେ ଆଲୁଅ ଯାଇପାରେ ନାହିଁ ।

କାଚ ବା ସେହିପରି ଜିନିଷ ହୋଇଥିଲେ ତା ମଧ୍ୟ ଦେଇ ଆଲୁଅ ଯାଇପାରେ । ଆଉ ଆମେ ଦେଖିପାରୁ । ଆଲୁଅ ପୁଣି ସିଧା, ଗୋଟିଏ ସରଳ ରେଖାରେ ଗତି କରେ । ଏହା ମଧ୍ୟ ଲହରୀ ରୂପରେ ଯାଏ ।

ଆମେ ଗୋଟିଏ ଜିନିଷକୁ ଦେଖୁ ଯେତେବେଳେ ତାଠାରୁ ଆଲୁଅ ଆସି ଆମ ଆଖିରେ ପଡ଼େ । ଆମ ଆଖିରେ ଗୋଟିଏ ଜିନିଷର ଆଲୁଅ ପଡ଼ି ତାର ସୂଚନା ଯାଏ ମସ୍ତିଷ୍କକୁ । ମସ୍ତିଷ୍କ ଆମକୁ ଜଣାଇ ଦିଏ ତାର ଚେହେରା । ତା ପରେ ଆମେ "ଦେଖୁ" । ସେଥିପାଇଁ ଆମ ଆଖିରେ ଯାହା ସବୁ ପଡ଼େ, ସେ ସବୁକୁ ଆମେ ଦେଖୁନାହୁଁ ।

ଆମର ଦୁଇଟି ଆଖି । ଗୋଟିଏ ଜିନିଷକୁ ଦେଖିଲେ ଦୁଇ ଆଖିରେ ଟିକିଏ ଅଲଗା ଅଲଗା ଦେଖାଯାଏ । ହେଲେ, ଦୁଇଟି ଆଖି ମିଳିମିଶି ଗୋଟିଏ ଜିନିଷକୁ ଠିକ୍ କରି ଦେଖନ୍ତି । କେତେ ଦୂରରେ ତାହା ଅଛି କଳନା କରନ୍ତି । ଆମର ଆଖିରେ ମୂଳ ତିନୋଟି ରଙ୍ଗ ବାରି ହୋଇପଡ଼େ । ସେଗୁଡ଼ିକ ହେଲା—ଲାଲ, ନୀଳ ଓ ସବୁଜ । ଏଇ ରଙ୍ଗରୁ ମିଶାମିଶି ହୋଇ ଅନ୍ୟ ରଙ୍ଗ ହୁଏ ।

ରଙ୍ଗୀନ ଜିନିଷ ସେଇସବୁ ରଙ୍ଗର ଆଲୁଅ ଆମ ଆଖିକୁ ପକାଏ । ଗୋଟିଏ ଲାଲ ଗୋଲାପ ଫୁଲ ଲାଲ ରଙ୍ଗ ଛଡ଼ା ଆଉ ସବୁ ରଙ୍ଗକୁ ମିଳାଇ ଦିଏ । ବେଶୀ ତାର ଲାଲ ରଙ୍ଗ ଆମ ଆଖିରେ ପଡ଼େ । ତେଣୁ ଗୋଲାପଟି ଲାଲ ଦିଶେ ।

ମଣିଷ ଦୂର ଜିନିଷକୁ ଦେଖିବାକୁ ଚାହିଁଲା । ତାର ଦୃଷ୍ଟି ଶକ୍ତିକୁ ବଢ଼ାଇବାକୁ ମନ କଲା । ସେଥିପାଇଁ ସେ

ଦୂରବୀକ୍ଷଣ ଯନ୍ତ୍ର ବାହାର କଲା । ଟେଲଭିଜନକୁ ବାହାର କରିବାକୁ ଚେଷ୍ଟା କଲା । ଦୁଇଟି ଶବ୍ଦ "ଟେଲି" (ଦୂର) ଓ "ଭିଜନ" (ଦର୍ଶନ)କୁ ନେଇ ଟେଲଭିଜନ । ଯେଉଁ ଉପକରଣ ସାହାଯ୍ୟରେ ଆମେ ଦୂର ଜିନିଷ ଓ ଜୀବଙ୍କୁ ଦେଖିପାରୁ, ତାହା ହେଲା ଦୂର ଦର୍ଶନ ।

ଏଥିପାଇଁ ମଣିଷର ଉଦ୍ୟମରେ ଅନ୍ତ ନାହିଁ । ନାନା ଦେଶର, ନାନା ଜାତିର ବୈଜ୍ଞାନିକ ଏଥିପାଇଁ ଲାଗି ପଡ଼ିଲେ ।



କିନ୍ତୁ ଏହାର ପ୍ରକୃତ ସଫଳତା ମିଳିଲା ଜନ୍ ଲୋଜି ବେୟାର୍ଡ଼ ନାମକ ବିଲାତର ଜଣେ ବୈଜ୍ଞାନିକଙ୍କୁ । ଥରେ ସୁନୀଳ ସାଗରକୁ ଦେଖି ସେ ଟେଲଭିଜନର କଳ୍ପନା କରିଥିଲେ ।

ସେତେବେଳକୁ ବେତାର ବାହାରିଲା । ଶବ୍ଦକୁ ଯେମିତି ଦୂରକୁ ପଠାଇବା ସମ୍ଭବ ହେଲା । ଚିତ୍ରକୁ ମଧ୍ୟ

ସେମିତ ଦୂରକୁ ପଠାଇ ହେବ, ଏହା ଥିଲା ବୈଜ୍ଞାନିକ-ମାନଙ୍କର ବିଶ୍ୱାସ । ଆଲୁଅ, ଉତ୍ତାପ, ଶବ୍ଦ ଆଉ ବିଜୁଳି ଶକ୍ତି । ଏଥିରୁ ପ୍ରତ୍ୟେକ ଗୋଟିଏ ରୂପରୁ ଆଉ ଏକ ରୂପକୁ ବଦଳି ଯାଇପାରିବ ।

ବେୟାର୍ଡ଼ ଅନେକ କଥା ଭାବିଲେ । ଗୋଟିଏ ଛବି ବା ଜିନିଷକୁ କ୍ୟାମେରା ଆଗରେ ରଖାଯିବ । ତା ଉପରେ ଖୁବ୍ ଉଜ୍ଜଳ ଆଲୋକ ପକାଯିବ । ତାର ଏକ ଛବି କ୍ୟାମେରା କାଚ (ଲେନସ୍)ରେ ଆଙ୍କି ହୋଇଯିବ । ଏଇ ଚିତ୍ରକୁ ବିଜୁଳି ଶକ୍ତି ଆକାରରେ ବଦଳାଇ ଦିଆଯିବ । ସେଇ ବିଜୁଳି ଶକ୍ତିକୁ ବେତାର ଲହରୀ ରୂପରେ ଛାଡ଼ି ଦିଆଯିବ । ପୁଣି ସେଇ ଲହରୀକୁ ବିଜୁଳି ଶକ୍ତିରେ ପରିଣତ କରି ସେଥିରୁ ଚିତ୍ର ଦେଖାଇବା ସମ୍ଭବ ହେବ ।

ଏଇ ପ୍ରକାର ଚିତ୍ର ପଠାଇବା ଦିଗରେ ବେୟାର୍ଡ଼ ନାନା ପରୀକ୍ଷା କଲେ । ନାନା ପ୍ରକାର ଗବେଷଣା କଲେ । ନିଜର ଅସୁସ୍ଥତା ଓ ଆର୍ଥିକ ଅଭାବ ଅସୁବିଧା ଭିତରେ ସେ ଆଗେଇଲେ । ସବୁ ବାଧାବିଘ୍ନ ମଧ୍ୟରେ ଆଗେଇ ଶେଷରେ ସେ ଏଥିରେ ସଫଳ ହେଲେ ।

ସେ ନିର୍ଜୀବ ପଦାର୍ଥର ଚିତ୍ର ସିନା ପଠାଇ ପାରିଲେ, ଜୀଅନ୍ତା ମଣିଷ ଆଉ ତାର କାର୍ଯ୍ୟର ଛବିକୁ କିପରି

ପଠାଇ ପାରିବେ, ସେଥିପାଇଁ ଚେଷ୍ଟାକଲେ । ସେ ଥରେ ଏଥିପାଇଁ ପରୀକ୍ଷା କରି ସଫଳ ହେଲା ପରି ଭାବିଲେ । ଆଉ ଜଣେ କାହାକୁ ପାଇଲେ ଯନ୍ତ୍ର ଆଗରେ ଠିଆ କରି ଅନ୍ୟ ଗୋଟିଏ ଘରେ ତା'ର ଛବିକୁ ଦେଖିବେ ।

ଉପର ମହଲାରୁ ତଳକୁ ଏଥିପାଇଁ ଧାଇଁ ଆସିଲେ । ଦେଖିଲେ ଗୋଟିଏ ଗରିବ ଲୋକ ଆସୁଛି । ତାକୁ କାକୁତି ମିନତି କଲେ । ହେଲେ, ସେ ରାଜି ହେଲା ନାହିଁ । ତାକୁ କିଛି ପାରିଶ୍ରମିକ ଦେଇ ଯନ୍ତ୍ର ଆଗରେ ଠିଆ କଲେ । ଉପର ମହଲାକୁ ଯାଇ ଦେଖିଲେ, କିଛି ଦେଖା ଯାଉନାହିଁ । ସେ ହତାଶ ହୋଇ ପଡ଼ିଲେ ।

ତଳ ମହଲାକୁ ଯାଇ ଦେଖିଲେ ସେ ଲୋକଟି ଯନ୍ତ୍ର ଆଗରେ ନାହିଁ । ଭୟରେ କୁଆଡ଼େ ପଳାଇ ଯାଇଛି । ପୁଣି ତାକୁ ବହୁତ ଅନୁରୋଧ କଲେ । ସାହାସ ଦେଲେ । ସେ ଲୋକଟି ଯନ୍ତ୍ର ପାଖରେ ଠିଆ ହେଲା । ବେୟାର୍ଡ଼ ଉପରକୁ ଯାଇ ଦେଖିଲେ ସେଇ ଲୋକଟିର ସ୍ପଷ୍ଟ ଛବି । ସିନେମା ଛବିପରି ଦେଖା ଯାଉଥିଲା ।

ସଫଳତାର ଆନନ୍ଦରେ ବେୟାର୍ଡ଼ଙ୍କ ଆଖିରୁ ଲୁହ ଝରି ପଡ଼ିଲା । କେତେ କଷ୍ଟ ପରେ ତାଙ୍କର ସ୍ୱପ୍ନ ସଫଳ ହେଲା । ସେ ପ୍ରଥମେ ବିଲାତର ବିଖ୍ୟାତ ଡର୍ବି ଘୋଡ଼ା ଦୌଡ଼ ହେଲାବେଳେ ଟେଲିଭିଜନରେ ଦେଖାଇ ପାରିଲେ ।

ସାରା ଦେଶରେ ଚହଲ ପଡ଼ିଗଲା । ସାରା ଦୁନିଆରେ ତାଙ୍କର ପ୍ରଶଂସା ହୋଇଗଲା ।



ତା ପରେ ବେୟାର୍ଡ଼ଙ୍କ ଟେଲିଭିଜନରେ ବହୁ ଉନ୍ନତି ଦେଖା ଦେଲା । କଥା, ଗୀତ, ନାଟକ, ଭାଷଣ ଆଦି ଦୂରରୁ ଆସି ପାଖରେ ଶୁଣାଗଲା । ଆଉ ଲୋକମାନେ ତା ସହିତ ଦେଖାଗଲେ ।

ଟେଲିଭିଜନ କାର୍ଯ୍ୟକ୍ରମ ଗୁଡ଼ିକ ସାରା ଦେଶ ପାଇଁ ହୋଇପାରେ । ଗୋଟିଏ ରାଜ୍ୟ ବା ଗୋଟିଏ ଅଞ୍ଚଳ ପାଇଁ ହୋଇପାରେ । କେତେକ କାର୍ଯ୍ୟକ୍ରମ ଏକ ସୀମିତ ପରି-ବେଶରେ ତିଆରି ଓ ପ୍ରଚାର ହୋଇଥାଏ । ଅଳ୍ପ କ୍ଷମତା ବିଶିଷ୍ଟ କ୍ୟାମେରା ସାହାଯ୍ୟରେ ପ୍ରସ୍ତୁତ ହୋଇ ଏହାର କାର୍ଯ୍ୟକ୍ରମମାନ ନିର୍ଦ୍ଦିଷ୍ଟ କେତେକ ଦର୍ଶକ ମାନଙ୍କ ପାଇଁ

ଉଦ୍ଦିଷ୍ଟ ହୋଇଥାଏ । ଏହାକୁ ସି. ସି. ଟି. ଭି. କୁହାଯାଏ । ଶିକ୍ଷା ଅନୁଷ୍ଠାନ ଗୃହ୍ଣକରେ ଶକ୍ଷାମୂଳକ କାର୍ଯ୍ୟକ୍ରମ ପ୍ରସ୍ତୁତ ଓ ବ୍ୟବହାର ପାଇଁ ଏହା ଖୁବ୍ ଉପଯୁକ୍ତ ହୋଇଥାଏ ।

ଆଜି ଗୋଟିଏ କୋଠରୀରେ ବସି ମଣିଷ ସାରା ଜଗତର ଘଟଣା ଦେଖି ପାରୁଛି । ମହାଶୂନ୍ୟ ଠାରୁ ମହାସାଗର, ଜନ୍ମରାଇଜରୁ ଯମରାଇଜ ଯାଏ ସବୁ ରକମର କଥା, ଗୀତ, ଭ୍ରମଣ କାହାଣୀ, ଭାଷଣ ଆଦି ଶୁଣିପାରୁଛି । ନିଜ ଘରେ ବସି ବିଶ୍ୱବିଦ୍ୟାଳୟର ବଡ଼ ଅଧ୍ୟାପକଙ୍କ ପାଠପଢ଼ାରୁ ଶିକ୍ଷା ପାଉଛି । ଆରାମ ଚଉକିରେ ବସି ଖେଳ ପଡ଼ିଆର ଖେଳମାନ ଦେଖି ପାରୁଛି ।

ଏଇ ହେଲା ଟେଲିଭିଜନର ମଜା । ଦୂର ଦର୍ଶନର ମାୟା ଆଉ ବିଜ୍ଞାନର କରାମତି । ଯୋଗାଯୋଗ କ୍ଷେତ୍ରରେ ଏହା ଏକ ଖୁବ୍ ଅଦ୍ଭୁତ କାର୍ଯ୍ୟମାନ କରିପାରୁଛି । ଆଗକୁ ମଧ୍ୟ ଆହୁରି ଅଧିକ କରିପାରିବ ।



# ଦୂର ଯୋଗାଯୋଗରେ କୃତ୍ରିମ ଉପଗ୍ରହ

୧୯୪୫ ମସିହାର କଥା । ବିଲାତର ଜଣେ ବଡ଼ ବୈଜ୍ଞାନୀ ଆର୍ଥର କ୍ଲାର୍କ । ସାରା ଦୁନିଆକୁ ଯୋଗାଯୋଗର



ଗୋଟିଏ ଉପାୟରେ ବାନ୍ଧିଦେବାକୁ ସ୍ୱପ୍ନ ଦେଖିଥିଲେ । ଏହାର ସମ୍ଭାବନା ସେ ଦେଖିଥିଲେ ମଣିଷ ତିଆରି ଉପଗ୍ରହ ।

କ୍ଲାର୍କ ଏଇ ସ୍ୱପ୍ନରେ ସଫଳତା ପାଇଁ ତିନୋଟି ସର୍ତ୍ତ ରଖିଥିଲେ । ସେ ଗୁଡ଼ିକ ହେଲା—(୧) ସେଇ କୃତ୍ରିମ ଉପଗ୍ରହଟି ବିଷୁବ ମଣ୍ଡଳ ଉପରେ ରଖାଯିବ । (୨) ପୃଥିବୀଠାରୁ ସେ ୩୫ ହଜାର ୮ ଶହ କିଲୋମିଟର (୨୨ ହଜାର ୩ ଶହ ମାଇଲ) ଉଚ୍ଚରେ ରହିବ । (୩) ପୃଥିବୀ ଯେଉଁ ଗତିରେ ସୂର୍ଯ୍ୟକୁ ପ୍ରଦକ୍ଷିଣ କରୁଛି, ସେଇ ଗତିରେ ସେ ବୁଲିବ ।

ଏହା ଦ୍ୱାରା ସେଇ ଉପଗ୍ରହଟି ପୃଥିବୀ ସ୍ଥିର ଭାବରେ ରହିବା ପରି ଜଣାଯିବ । ତେଣୁ ଯୋଗାଯୋଗ କ୍ଷେତ୍ରରେ ଏହା ଏକ ଗୁରୁତ୍ୱ ପୂର୍ଣ୍ଣ କାର୍ଯ୍ୟ କରି ପାରିବ । ଏହା ପୃଥିବୀର ତିନି ଭାଗରୁ ଏକ ଭାଗ ଅଞ୍ଚଳକୁ ବେତାର ଖବର ଦେଇପାରିବ ।

କ୍ଲାର୍କ ପୁଣି କହିଥିଲେ—ଏମିତି ୩ଟି ଉପଗ୍ରହ ସମାନ ଦୂରତାରେ ମହାକାଶରେ ରଖା ଯାଇ ପାରିଲେ, ସାରା ପୃଥିବୀକୁ ଯୋଯୋଗର ଗୋଟିଏ ଖିଅରେ ବାନ୍ଧି ପାରିବ । ସମଗ୍ର ପୃଥିବୀ ବେତାର ସଂକେତ ପାଇପାରିବ । ରେଡ଼ିଓ ଓ ଟେଲିଭିଜନ କାର୍ଯ୍ୟକ୍ରମମାନ ପାଇବା ପାଇଁ ଏହା ଯୋଗୁଁ ଶସ୍ତା ଓ ସୁବିଧାଜନକ ହେବ ।

ଯେତେବେଳେ କ୍ଲାର୍କ ଏ କଥା କହିଥିଲେ ସେତେ-ବେଳେ ଏପରି ଉପଗ୍ରହ ବାହାରି ନଥିଲା । ଏମିତି ଉପଗ୍ରହକୁ ଏତେ ଉଚ୍ଚରେ ଛାଡ଼ିବା ପାଇଁ ଶକ୍ତିଶାଳୀ ରକେଟ ମଧ୍ୟ

ତିଆରି ହୋଇ ନଥିଲା । କିନ୍ତୁ ସମସ୍ତ ବଦଳିଲା । ବିଜ୍ଞାନ ଓ କାରିଗରିର ଉନ୍ନତି ହେଲା ।

୧୯୫୭ରେ ଋଷ ମହାକାଶକୁ ଏ କୃତ୍ରିମ ଉପଗ୍ରହ ସ୍ପୁଟ୍‌ନିକ୍ ଛାଡ଼ିଲା । ତା ପରେ ୧୯୫୮ରେ ଆମେରିକା



ଏମିତି ଏକ ଉପଗ୍ରହ ଏକ୍‌ସପ୍ଲୋରର୍‌ଙ୍କ ମହାଶୂନ୍ୟକୁ ଛାଡ଼ିଲା । ଏହା ପରେ ବହୁ ଦେଶ ମହାକାଶକୁ କୃତ୍ରିମ ଉପଗ୍ରହମାନ ଛାଡ଼ିଲେ । ଦୂର ଯୋଗଯୋଗ କ୍ଷେତ୍ରରେ ଏକ ବିରାଟ ବିପ୍ଳବର ଶୁଭ ସୂଚନା ମିଳିଲା ।

୧୯୫୯ ମସିହାର କଥା । ଆମେରିକା ଏକ ଦୂର ଯୋଗାଯୋଗ ଉପଗ୍ରହ ମହାଶୂନ୍ୟକୁ ପଠାଇଲା । ଏହା ଦ୍ଵାରା ରାଷ୍ଟ୍ରପତି ଆଇଜେନ ହାୱାରଙ୍କ ବଡ଼ ଦିନ ଶୁଭେଚ୍ଛା ପ୍ରଚାରିତ ହୋଇଥିଲା । ତା ପରବର୍ଷ କୋରିଅର ନାମକ ଏକ କୃତ୍ରିମ ଉପଗ୍ରହ ମହାକାଶକୁ ଛଡ଼ାଗଲା । ପୃଥିବୀରୁ ବେତାର ଖବରମାନ ସେଠାକୁ ପଠାଗଲା । ସେଠାରୁ ପୁଣି ପୃଥିବୀକୁ ଆସିପାରୁଥିଲା ।

୧୯୬୨ ମସିହାରେ ଆମେରିକାର ଜାତୀୟ ମହାକାଶ ପ୍ରଶାସନ ସଂସ୍ଥା ତରଫରୁ ଟେଲଷ୍ଟାର ନାମକ ଏକ କୃତ୍ରିମ ଉପଗ୍ରହ ମହାକାଶକୁ ପଠାଯାଇଥିଲା । ଆମେରିକା ଓ ୟୁରୋପ ମଧ୍ୟରେ ବହୁ ଟେଲିଭିଜନ କାର୍ଯ୍ୟକ୍ରମ ଏହା ସାହାଯ୍ୟରେ ବିନିମୟ ହୋଇ ପାରୁଥିଲା । ସେଇ କାର୍ଯ୍ୟକ୍ରମମାନ ଉଭୟ କଳାଧଳା ଓ ରଙ୍ଗୀନ ହୋଇଥିଲା । ଏହା ସାହାଯ୍ୟରେ ଉଭୟ ମହାଦେଶରେ ଟେଲିଫୋନ କଥାବାର୍ତ୍ତା ସୁବିଧାରେ ହୋଇ ପାରୁଥିଲା ।

୧୯୬୪ ମସିହାରେ ସିନ୍‌କମ୍ କୃତ୍ରିମ ଉପଗ୍ରହ ମହାକାଶକୁ ଛଡ଼ା ଗଲା । ଏହା ସାହାଯ୍ୟରେ ଟୋକିଓରେ ହୋଇଥିବା ଅଲିମ୍ପିକ ଖେଳ ଟେଲିଭିଜନରେ ଦେଖିବା ସମ୍ଭବ ହୋଇଥିଲା । ସେଇ ବର୍ଷ ଅନ୍ତରାଷ୍ଟ୍ରୀୟ ଦୂର ଯୋଗାଯୋଗ ଉପଗ୍ରହ ସଂଘ ଗଢ଼ା ଗଲା । ଏଥିରେ ଏକ ଶହରୁ ଅଧିକ ଦେଶ ସଭ୍ୟ ହେଲେ ।

୧୯୬୫ ମସିହାରେ ଏହି ଅନ୍ତର୍ଜାତୀୟ ସଂସ୍ଥା ତରଫରୁ ଏକ କୃତ୍ରିମ ଉପଗ୍ରହ (ଇଣ୍ଟଲସେଟ୍) ମହାକାଶକୁ ଛଡ଼ା ଯାଇଥିଲା । ତା ପରେ ସେ ଅଉ କେତେକ ଉପଗ୍ରହ ପଠାଇବାରେ ସଫଳ ହୋଇଥିଲା । ତା ସାହାଯ୍ୟରେ ହଜାର ହଜାର ଟେଲିଫୋନ କଥା ବାର୍ତ୍ତା ସମ୍ଭବ ହେଲା । ଅନେକ ପ୍ରକାର ଟେଲିଭିଜନ କାର୍ଯ୍ୟକ୍ରମ ପୃଥିବୀର ଅଧିକାଂଶ ଦେଶରେ ଦେଖା ଯାଇଥିଲା ।

୧୯୭୨ ମସିହାର କଥା । ବହୁ ବର୍ଷର ଛାଡ଼ବାଡ଼ ପରେ ଆମେରିକାର ରାଷ୍ଟ୍ରପତି ନିକ୍ସନ ଚୀନ ଭ୍ରମଣରେ ଯାଇଥିଲେ । ଚୀନର ରାଷ୍ଟ୍ରପତି ମାଓସେତୁଙ୍ଗଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଏହି ଘଟଣା ସେଇ କୃତ୍ରିମ ଉପଗ୍ରହ ସାହାଯ୍ୟରେ ସାରା ଦୁନିଆ ଲୋକେ ଟେଲି-ଭିଜନରେ ଦେଖିବାର ସୁଯୋଗ ପାଇଥିଲେ ।

୧୯୭୯ ମସିହାରେ । ଆମେରିକା ଓ ଭାରତ ମଧ୍ୟରେ ଏକ ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଥିଲା । ଯୋଗାଯୋଗ କ୍ଷେତ୍ରରେ ଏହା ଏକ ଉଲ୍ଲେଖ ଯୋଗ୍ୟ ଘଟଣା । ଏହା ଫଳରେ ଆମେରିକା ଏଟିସ-୬ ନାମକ ଏକ କୃତ୍ରିମ ଉପଗ୍ରହକୁ ବର୍ଷକ ପାଇଁ ଭାରତକୁ ଧାର ସୂତ୍ରରେ ଦେଇ-ଥିଲା ।

୧୯୭୪ ମସିହାରେ ଏହି ଉପଗ୍ରହକୁ ମହାକାଶକୁ ଛଡ଼ା ଯାଇଥିଲା । ୩୫ ହଜାର ୮ ଶହ କିଲୋମିଟର ଉଚ୍ଚତାରେ

ଏହା ରଖା ଯାଇଥିଲା । ଭାରତ ଆଡ଼କୁ ଏହାକୁ ମୁହାଇଁ ରଖାଯାଇଥିଲା । ଏହାର ଗତିକୁ ମଧ୍ୟ ପୃଥିବୀର ସୂର୍ଯ୍ୟକୁ ପ୍ରଦକ୍ଷିଣ କରିବା ଗତି ସହିତ ସମାନ ରଖାଯାଇଥିଲା ।



ଫଳରେ ଏହା ପୃଥିବୀ ଦୃଷ୍ଟିରୁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରହିଥିଲା । ଏହା ସାହାଯ୍ୟରେ ଭାରତରେ ସାଇଟ୍ ବା "ଉପଗ୍ରହ ଶିକ୍ଷା ଦୂର ଦର୍ଶନ ପରୀକ୍ଷା" କାର୍ଯ୍ୟକାରୀ ହୋଇଥିଲା ।

ଏହି ପରୀକ୍ଷାଟି ୧୯୭୫ ଅଗଷ୍ଟ ପହିଲାରୁ ୧୯୭୬ ଜୁଲାଇ ୩୧ ଯାଏ ଠିକ୍ ବର୍ଷକ ପାଇଁ ସଂପାଦିତ

ହୋଇଥିଲା । ଓଡ଼ିଶା, ବିହାର, ରାଜସ୍ଥାନ, କର୍ଣ୍ଣାଟକ, ମଧ୍ୟ ପ୍ରଦେଶ ଓ ଆନ୍ଧ୍ର ପ୍ରଦେଶ ଏହି ୬ଟି ରାଜ୍ୟର ଗାଁ ଗହଳ ପାଇଁ ଏହି ପରୀକ୍ଷା ଉଦ୍ଦିଷ୍ଟ ଥିଲା । ପ୍ରାୟ ଦୁଇ ହଜାର ଟେଲିଭିଜନ ସେଟ ଗ୍ରାମ୍ୟ ବିଦ୍ୟାଳୟ ଓ ପଞ୍ଚାୟତ ଘରେ ରଖା ଯାଇଥିଲା ।



ସକାଳ ଓ ସଂଧ୍ୟାରେ ମୋଟ ୪ ଘଣ୍ଟା କାଳ ଦୂର-ଦର୍ଶନ କାର୍ଯ୍ୟକ୍ରମ ଦେଖିବାକୁ ମିଳୁଥିଲା । ସକାଳ ବେଳା ଦେଢ଼ ଘଣ୍ଟା ପ୍ରାଥମିକ ବିଦ୍ୟାଳୟ ପାଇଁ ଏବଂ ସଞ୍ଜରେ ଦୁଇ ଘଣ୍ଟା ବୟସ୍କ ଲୋକମାନଙ୍କ ପାଇଁ କାର୍ଯ୍ୟକ୍ରମମାନ ସଂପ୍ରଚାରିତ ହେଉଥିଲା । ପିଲାମାନଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ଏବଂ ବଡ଼ମାନଙ୍କ ପାଇଁ ପ୍ରୌଢ଼ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ହସ୍ତଶିଳ୍ପ, ନାଗରିକ ଶିକ୍ଷା ଆଦି କାର୍ଯ୍ୟକ୍ରମ ଉଦ୍ଦିଷ୍ଟ ଥିଲା ।

ସାରା ଜଗତରେ ଏହା ଥିଲା ଏକ ଗୁରୁତ୍ୱ ପୂର୍ଣ୍ଣ ପରୀକ୍ଷା । ବିଶେଷ କରି ଯୋଗାଯୋଗ କ୍ଷେତ୍ରରେ ଏହାର ଉପାଦେୟତା ସବୁଠାରୁ ଅଧିକ ହେଲା । ଗାଉଁଲି ଲୋକ-ମାନେ ଦୂରଦର୍ଶନ କାର୍ଯ୍ୟକ୍ରମକୁ କେତେଦୂର ବୁଝି ପାରୁଛନ୍ତି, ଆଦର କରୁଛନ୍ତି, ଜାତୀୟ ଉନ୍ନୟନରେ କେତେଦୂର ସାହାଯ୍ୟ କରୁଛି, ଏହା ଜାଣିବା ଥିଲା ଏହି ପରୀକ୍ଷାର ଉଦ୍ଦେଶ୍ୟ । ଏହାର ସଫଳତା ବହୁ ଗବେଷଣାରୁ ଜଣା ପଡ଼ିଲା ।



ଏହି ସଫଳତା ଯୋଗାଯୋଗ କ୍ଷେତ୍ରରେ କୃତ୍ରିମ ଉପଗ୍ରହର ଉପଯୋଗିତା ଦିଗରେ ଭାରତକୁ ବହୁଦୂର

ଆଗେଇ ନେଲା । ତାପରେ ଭାରତର ବୈଜ୍ଞାନିମାନେ ଆର୍ଯ୍ୟଭଟ୍ଟ, ଭାସ୍କର, ରୋହିଣୀ, ଆଦି ଉପଗ୍ରହମାନ ମହାକାଶକୁ ଛାଡ଼ିଲେ । ଦେଶର ପାଣିପାଗ ଓ ଯୋଗା-ଯୋଗ କ୍ଷେତ୍ରରେ ଏଗୁଡ଼ିକ ଖୁବ୍ ସାହାଯ୍ୟ କଲା ।

୧୯୮୨ ମସିହା ଏପ୍ରିଲ ୧୦ ତାରିଖରେ ଭାରତୀୟ ଜାତୀୟ ଉପଗ୍ରହ (ଇନ୍‌ସାଟ୍-୧) ଆମେରିକା ସହାୟତାରେ



ମହାକାଶକୁ ଛଡ଼ାଗଲା । ଏହା ଫଳରେ ସାରା ଦେଶରେ ରେଡ଼ିଓ ଓ ଟେଲିଭିଜନ କାର୍ଯ୍ୟକ୍ରମର ବିଶେଷ ପ୍ରସାରଣ

ଘଟିଲା । ଭାରତୀୟ ଶଲ୍ଗାନୀମାନଙ୍କ ନକ୍ସା ଅନୁସାରେ ଆମେରିକାରେ ଏହା ଗଢ଼ା ଯାଇଥିଲା ।

ଏହାର ପ୍ରଯୋଜନା ଓ ପରିଚାଳନା ଦାୟିତ୍ୱ ପୂର୍ଣ୍ଣ-ପୂର୍ଣ୍ଣ ଭାବରେ ଭାରତୀୟମାନେ ନେଇଥିବାରୁ ଏହାକୁ ଜାତୀୟ ଉପଗ୍ରହ କୁହାଗଲା । ଗୋଟିଏ ପରେ ଗୋଟିଏ ଏମିତି ତନୋଟି ଉପଗ୍ରହ ମହାକାଶକୁ ଛଡ଼ାଯାଇଛି । କେଉଁଥିରୁ ସଫଳତା ତ କେଉଁଥିରୁ ବିଫଳତା ମିଳିଛି । ହେଲେ, ଭାରତ ଯେ ଯୋଗାଯୋଗ କ୍ଷେତ୍ରରେ କୃତ୍ରିମ ଉପଗ୍ରହକୁ ବ୍ୟବହାର କରିବାରେ ବିଶେଷ ଭାବରେ କୃତକାର୍ଯ୍ୟ ହୋଇଛି, ଏଥିରେ ସନ୍ଦେହ ନାହିଁ ।

•

ସହଜ ଓ ଶସ୍ତାରେ ଦୂର ଦୂରାନ୍ତରକୁ ଯୋଗାଯୋଗ କରିବାରେ କୃତ୍ରିମ ଉପଗ୍ରହ ସଫଳ ହୋଇଛି । ସାରା ଦୁନିଆରେ ଏହାର କାର୍ଯ୍ୟକାରିତା ପ୍ରମାଣିତ ହୋଇଛି । ପୃଥିବୀର ଗୋଟିଏ ମୁଣ୍ଡରୁ ଯାଇ କୌଣସି କାର୍ଯ୍ୟକ୍ରମ ଅଧ ସେକେଣ୍ଡକ ଭିତରେ ଅନ୍ୟ ମୁଣ୍ଡରେ ପହଞ୍ଚି ପାରିବ । ଆଖି ପିଛୁଳାକେ ପୃଥିବୀର ସବୁ ଦେଶରେ ଗୋଟିଏ

ସନ୍ଦେଶ ପହଞ୍ଚିଯିବା ଏକ କୌତୁକ ଖେଳପରି ଲାଗୁଛି । ହେଲେ, ଆଜି କୃତ୍ରିମ ଉପଗ୍ରହ ଯୋଗୁଁ ତାହା ସତ ହୋଇଛି । କାଲିକୁ ଏହା ସାହାଯ୍ୟରେ ଆହୁରି ଅନେକ ସ୍ୱପ୍ନ ସଫଳ ହୋଇ ପାରିବ ।



ୡ